ଶ୍ରୀ ଗୋପାଳଚନ୍ଦ୍ର ମାଏଙ୍କ ରଚିତ

# ଦୋଳି ଗୀତ ।

( ସୀତା ଓ ଦ୍ରୌପଦୀ ସ୍ୱୟମ୍ବର )

କବିଙ୍କ ଅନୁମତି କ୍ରମେ

ଶ୍ରୀ ଚନ୍ଦ୍ରମୋହନ ସାହୁ ଓଗେରଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ ।

କଟକ-ଅରୁଣୋଦୟ ଯନ୍ତ୍ରାଳୟରେ ପ୍ରଥମବାର ମୁଦ୍ରିତ ।



Printed by Nityananda Sahoo
at the Arunodaya Press
CUTTACK
1930

ମୂଲ୍ୟ ଠ ୦ /୩ ପାଇଁପଇସା ।

# ଢୋଳି ଗୀତ ।

## ( ସୀତା ସ୍ୱୟମ୍ବର )

ପାଠକଗଣ, ପଦ୍ୟର ପ୍ରଥମ ଓ ଶେଷ ପଦରେ କୋଇଲି ଶବ୍ଦ ଲେଖା ଗଲା କିନ୍ତୁ ପଦ୍ୟ ପାଠ କଲାବେଳେ କୋଇଲି ଶବ୍ଦ ବ୍ୟବହାର କରିବାକୁ ହେବ ।

ମିଥିଳା ରାଜା ଜନକ । ସର୍ବଶାସ୍ତ୍ରେ ବଡ଼ ପ୍ରଜାପାଳକ ।
ପୁଣି ଅତ୍ୟନ୍ତ ଧାର୍ମିକ । କୋଇଲି ଲୋ । ୧ ।

ଜାନକୀ ତାଙ୍କ ତନୁଜା । ନାରୀଏ କରନ୍ତି ତା ପାଦେ ପୂଜା ।
ଅତ୍ୟନ୍ତ ସେ ସୁନ୍ଦରଜା । ୨ ।

ବର୍ଷକ ନବବର୍ଷ । ସୀତାର ହୋଇଲା ଯୁବାସମୟ ।
କରିବ କେଉଁ ଉପାୟ । ୩ ।

ତହୁଁ ଅଧ୍ୟ କରି ଜନକ । ସ୍ୱୟମ୍ବର ହେବ କଲେ ଘୋଷିତ ।
ଜମବନ୍ଦି ଜ ରାଜଶ୍ଚତ । ୪ ।

ଦୂତ ପେଷିଲେ ବହନ । ନିମନ୍ତ୍ରଣ କଲେ ସର୍ବ ରାଜନ ।
ମିଥିଳା କର ଗମନ । ୫ ।

ଦୂତେ କହନ୍ତି ଏ ବାଣୀ । ଧନୁକୁ ଭାଙ୍ଗିବ ଯେ ନୃପମଣି ।
ସୀତା ହେବ ତା ରମଣୀ ।୬।

ମିଥିଳାର ରାଜେଶ୍ୱର । ପଣ କରିଛନ୍ତି ଏହିପ୍ରକାର ।
ସତ୍ୟ କହିଲୁ ସୁନ୍ଦର । ୭ ।

ବିଶ୍ୱାମିତ୍ରେ ଥାଇ ମୁନି । ସୀତାସ୍ୱୟମ୍ବର ସମ୍ବାଦ ଶୁଣି ।
ହର୍ଷେ ଭାଷିଲେ ଏ ବାଣୀ ।୮।

ଶୁଣ ଅହେ ରଘୁଶିଷ୍ୟ । ମୋ ସଙ୍ଗତେ ଚାଲ ମିଥିଳା ଦେଶ ।
ଧନୁ ଭାଙ୍ଗି ରଖ ଯଶ । ୯ ।

ଦସ୍ତମସ୍ତ ଦାଶରଥି । ମୋ ଅତିଶେ ହେଉ ମାନସ ପୂର୍ତ୍ତି ।
ସୀତାର ହୁଅ ତୁ ପତି ।୧୦।

ବିଶ୍ୱାମିତ୍ରଙ୍କ ସଙ୍ଗରେ । ଶ୍ରୀରାମ ଲକ୍ଷ୍ମଣ ଦୁଇ ସୋଦରେ ।
ଗମିଲେ ମିଥିଲା ପୁରେ ।୧୧।

ନାନା ସ୍ଥାନୁ ରାଜାଗଣ । ନିମନ୍ତ୍ରିତ ହୋଇ ଅସନ୍ତି ପୁଣ ।
ସୈନ୍ୟ ସାମନ୍ତ ଘେନିଣ ।୧୨।

ସ୍ୱୟମ୍ବର ହେବ ବୋଲି । ଶୋଭା ପାଉଅଛି ମିଥିଳାପୁରୀ ।
ଏକତ୍ରିତ ନରନାରୀ ।୧୩।

ବାଜେ ବାଦ୍ୟ ବାଜଣା । ଝମକ ନିଶାଣ ନଦେ ବଜନା ।
ଜନ ମନ ମୋହେ ବୀଣା ।୧୪।

ସେ ସ୍ଥାନ ସ୍ୱର୍ଗ ଭୁବନ । ସ୍ୱଗପୁରବର ଦଶେ ଶୋଭନ ।
ଯହିଁ ରାଜେ ବନ୍ଧୁଗଣ ।୧୫।

ଜନକ କଲେ ଉଚ୍ଚର । ସଭା ସର୍ବନୃପେ ଶୁଣ ମୋ ଗୀର ।
ଧନୁ ଯାଇ ଭଗ୍ନ କର ।୧୬।

ମୋ ସତ୍ୟ ଭଗ୍ନ ନ ହେବ । ଶିବଧନୁକୁ ଯେ ଜନ ଭାଙ୍ଗିବ ।
ବରମାଳା ତାକୁ ଦେବ ।୧୭।

ମିଥିଳାଦେଶ ନରେଶ । ମୃଦୁସ୍ମିତକୃତ ହକାରି ପାଶ ।
ସୀତାକୁ କରି ସୁବେଶ ।୧୮।

ସୁବେଶ କରାଇ ତାକୁ । ବୁଲାଇ ଅଣି ଶୁ ସବୁ ସ୍ଥାନକୁ ।
ନେଇଣ ଦେଖୁ ନୃପଙ୍କୁ । ୧୯ ।

ତା କର୍ମର ଭାଗ୍ୟବଳେ । ଯାହା ଦନ୍ଧ କିନ୍ଧ ଅଛି କପାଳେ ।
ଅନ୍ୟଥା ନୁହଇ ଭଲେ । ୨୦ ।

ଭାବ ମୁଁ ଅଛଇ ମନେ । ଯୋଗ୍ୟବରପ୍ରାପ୍ତ ଲଭିବ ଜଣେ ।
ଦୁଃଖ ନ ପାଇବ ଦିନେ । ୨୧ ।

ରାଜାଙ୍କ ଅଦେଶ ପାଇ । ମୃଦୁସ୍ମିତେ ତହିଁ ଅନ୍ତର ହୋଇ ।
ଅନ୍ତଃପୁରେ ମିଳେ ଯାଇ ।୨୨।

ସୁବେଶ କର ଜାନକୀ । ସଖୀର ବୃନ୍ଦ ଏ ଚଳଚଳ ।
ଦେଖନ୍ତି ନୃପ ସକଳ । ୨୩।
ତା ସଙ୍ଗତେ ବୁଲୁଥାନ୍ତି । କାହାରିକୁ ନେତ୍ର ନ ଥାଇ ଦୃଷ୍ଟି ।
ଦୃଷ୍ଟି ଦେଲେ ସ୍ୱାମୀ ପ୍ରତି । ୨୪।
ରାମଙ୍କ ସୁବା ବପୁସ । ଜାନକୀ ଦେଖିଣ ହେଲେ ସନ୍ତୋଷ ।
କହ କେହୁଁ ଏ ନରେଶ । ୨୫।
ସୂର୍ଯ୍ୟ ବଂଶର ଭକ୍ତ । ତାଙ୍କ ପିତା ଅଟନ୍ତି ଅଯୋଧ୍ୟାପତି ।
ତାଙ୍କ ନାମ ଦାଶରଥି । ୨୬।
ଦଶରଥଙ୍କର ସୁତ । ଯେମନ୍ତେ ହୋଇବ ଏ ମୋର କାନ୍ତ ।
ଏହା ମାଗେ ଜଗନ୍ନାଥ । ୨୭ ।
ତାଙ୍କ ରୂପ ହୃଦେ ଧ୍ୟାୟି । ନିବେଦେ ଜାନକୀ ହେ ଭବସ୍ୱାମୀ ।
ପତି ମୋର ହେବେ ସେହି । ୨୮।
ଶ୍ରୀରାମ ସୁନ୍ଦର ମୂର୍ତ୍ତି । ଭଗବାନ ପଦ୍ମ ନେତ୍ର ଦର୍ଶନ୍ତି ।
ପାଦ ସେବି ହେବି ମୁକ୍ତି । ୨୯।
ଛନ୍ଦ କଲୁ ଜଗନ୍ନାଥ । ପତି ବିନା ଗତି ନୁହଇ ଜାଣ ।
ହାହ କର ନାରାୟଣ । ୩୦।
ଯୁଗେ ଯୁଗେ ତୋର ନାମ । ବସି ଡାକୁଥିବ ଦାସୀ ହୋଇଣ ।
ଏହା ମାଗେ ଅନୁକ୍ଷଣ । ୩୧ ।
ସଭାଏ ଧନୁ ଟେକିଲେ । କେହିଁ ନ ପାରି ନ ଭଙ୍ଗି ପାରିଲେ ।
ମଉନେ ସର୍ବେ ବସିଲେ । ୩୨ ।
ଦଶରଥଙ୍କ କୁମର । କରୁଣାସାଗର ଶ୍ରୀରଘୁବୀର ।
ଧନୁ ଟେକିଲେ ଶ୍ରୀକର । ୩୩ ।
ରାମ ଟେକିଲେ କୋଦଣ୍ଡ । କୋଦଣ୍ଡ ହୋଇଲା ସେ ଦୁଇଖଣ୍ଡ ।
ଜୟ ଶବ୍ଦେ ସବୁ ତୁଣ୍ଡ । ୩୪ ।
ସ୍ୱର୍ଗେ ଥାଇ ସର୍ବ ଦେବେ । ଯେମନ୍ତେ ଶ୍ରୀରାମ ଧନୁ ଭାଙ୍ଗିବେ ।
ଦେଖୁଥାନ୍ତି ସରବେ । ୩୫ ।

ଧନୁଭଙ୍ଗ ଦେଖିବେଳେ । ତାଙ୍କ ଶିରେ ଦେବେ ପୁଷ୍ପ ବର୍ଷିଲେ ।
ଜୟ ଜୟ ଶବ୍ଦ କଲେ । ୩୬ ।
ରାଜାମାନେ ଲଜ୍ଜାପାଇ । ତଳକୁ ମସ୍ତକ ଦେଲେ ନୁଆଇଁ ।
ଲଜ୍ଜାତ କଣ୍ଠ ନୁହଇ । ୩୭ ।
ଜନକ ରାଜା ଦୁହିତା । ମାଳା ନେଇ ଗଲେ ରାମଙ୍କ କଣ୍ଠ ।
ରାମ ହେଲେ ସୀତାପତ । ୩୮ ।
ଦଶରଥ ନରବର । ପୁତ୍ର ଧନୁ ଭଙ୍ଗ ପାଇ ଖବର ।
ଗମିଲେ ମିଥିଳା ପୁର । ୩୯ ।
ଜନକ ହୋଇ ଭୂପତ । ସୀତାଙ୍କୁ ବିବାହ କଲେ ତୁରିତ ।
ଯୌତୁକ ଦେଲେ ବହୁତ । ୪୦ ।
ପୂରୁ ତୁମ୍ଭର ମାନସ । ଦୁହିତା ଜାମାତା ଦେଇ ଆଶିଷ ।
ସୁଖେ କଟାଅ ଦିବସ । ୪୧ ।
ଶ୍ୱଶୁରାଳୟରୁ ରାମ । ସୀତା ଘେନି ଗଲେ ଅପଣା ଧାମ ।
ସୈନ୍ୟ ସାମନ୍ତ ଅସୀମ । ୪୨ ।
ରାମ ଗମନ୍ତ ପଥରେ । ପର୍ଶୁରାମ ଆସି ପଥ ଓଗାଳେ ।
ଯୁଦ୍ଧକଲେ ତା ସଙ୍ଗରେ । ୪୩ ।
ସମର ହେଲା ବହୁତ । ପର୍ଶୁକୁ ଜିଣିଲେ କୌଶଲ୍ୟା ସୁତ ।
ନୋହିଲା ସେ ସାମରଥ । ୪୪ ।
ଉଡ଼ାଇ ଜୟ କେତନ । ରବିବଂଶେ ଚଳିଲେ ନିଜଭୁବନ ।
ବାଜନ୍ତି ନାନା ବାଦନ । ୪୫ ।
ଶ୍ରୀରାମଙ୍କ ଆଗମନ । ଅଯୋଧ୍ୟାବାସିଏ କଲେ ଶ୍ରବଣ ।
ହୁଅନ୍ତି ଆନନ୍ଦ ମନ । ୪୬ ।
ନମସ୍କରିଲେ ତାଙ୍କୁ ଯାଇ । ଅବିରଳ ଜୟ ଶବ୍ଦ ଶୁଭଇ ।
ବନ୍ଦିଲେ ପାଦାର୍ଘ୍ୟ ଦେଇ । ୪୭ ।
ଶ୍ରୀରାମ ସୀତାଙ୍କୁ ଦେଖି । ପଡ଼ଶ ହୋଇଲା ତାଙ୍କର ଆଖି ।
ନିରନ୍ତର ହେଲେ ସୁଖୀ । ୪୮ ।

ଅଯୋଧାର ନରନାରୀ । ଅନନ୍ଦ ହୁଅନ୍ତି ଦେଖି ମୈଥିଳୀ ।
ହର୍ଷେ ଦ୍ୟନ୍ତି ହୁଳହୁଳି । ୧୯ ।
ରାଜ ଭବନର ଚଣାଗ୍ର । ସତେକ ଦୀପର ଦେବଙ୍କ ସଙ୍ଗ ।
ପଟାନ୍ତର ଦେବ ଜବା । ୨୦ ।
ଅଗ୍ରେଛନ୍ତି ରାମସୀତା । କଉଶଲ୍ୟା ରାଣୀ ପାଇ ବାରତା ।
ତେଜିଲେ ସକଳ ଚିନ୍ତା । ୨୧ ।
ସିଂହ ଦ୍ୱାରରେ ତକ୍ଷଣ । ନାରିକେଳ କୁମ୍ଭ କଲେ ସ୍ଥାପନ ।
ଯୋଗାଇଲେ ଅର୍ଘ୍ୟମାନ । ୨୨ ।
ପୁତ୍ରବଧୂ ଦେଖି ନେତ୍ରାନେ । ଅର୍ଘ୍ୟ ବନ୍ଦାଇଣ ଘେନି ସେ ସଲେ ।
ଅନ୍ତଃପୁରେ ପ୍ରବେଶିଲେ । ୨୩ ।
ସୀତା ସ୍ୱୟମ୍ବର ଶେଷ । ଗୋପାଳଚନ୍ଦ୍ର ସା—ଏର ଏ ଭାଷ ।
ରକ୍ଷାକର ରଘୁଶିଷ । କୋଇଲି ଲୋ । ୨୪ ।



# ଦ୍ରୌପଦୀ ସ୍ୱୟମ୍ବର ।

ପାଞ୍ଚାଳ ଦେଶ ନରେଶ । ଅଛି ଅଶ୍ୱହାତୀ ଅନେକ ଦାସ ।
ସୌନ୍ଦର୍ଯ୍ୟ ରଣଇ ବାସ କୋଇଲି ଲୋ । ୧ ।
ତାହାଙ୍କ ନାମ ଦ୍ରୁପଦ । ଧାର୍ମିକ ଭବେକ ସେ ଦୟାବନ୍ତ ।
ପ୍ରଜାର କରନ୍ତି ହିତ । କୋଇଲି ଲୋ । ୨ ।
ତାଙ୍କ ଦୁହିତା ଦ୍ରୁପତ । ପରମା ସୁନ୍ଦରୀ ହେଲେ ଯୁବତୀ ।
ରାଜା ବସି ଭାବୁଥାନ୍ତି । କୋଇଲି ଲୋ । ୩ ।
ତାଙ୍କପର ଯୋଗ୍ୟବର । ଖୋଜି ନ ପାଇଲେ ରାଜକୁମାର ।
କରିଲେ ସେ ସ୍ୱୟମ୍ବର । କୋଇଲି ଲୋ । ୪ ।

ଲକ୍ଷେ ନୃପ ନିମନ୍ତ୍ରଣ । ସ୍ୱୟମ୍ବର ପାଇଁ କଲେ ସଜନ ।
ଫେରିଲେ ନିଜ ଭୁବନ । କୋଇଲି ଲୋ । ୫ ।

ସ୍ୱୟମ୍ବର କାଳ ଜାଣି । ନୃପଗଣେ ସୈନ୍ୟ ସାମନ୍ତ ଘେନି ।
ପ୍ରବେଶିଲେ ସେହିକ୍ଷଣି । କୋଇଲି ଲୋ । ୬ ।

ରାଜାଙ୍କୁ ଦେଖି ଦ୍ରୁପଦ । ଆନନ୍ଦରେ କଲେ ମାନ୍ୟ ବହୁତ ।
ସଭା ଶୋଭା ଅଚମ୍ଭିତ । କୋଇଲି ଲୋ । ୭ ।

ସର୍ବଋଷି ନାରଦାଦି । ଯଦୁବଂଶ ସଙ୍ଗେ ହଳୀ ଶ୍ରୀପତି ।
ଉପଗତ ସଭାକତି । କୋଇଲି ଲୋ । ୮ ।

ରାମ ଶ୍ରୀପତିଙ୍କୁ ଦେଖି । ଦ୍ରୁପଦ ଆସନ ଶୀଘ୍ର ଉପେକ୍ଷି ।
ମାନ୍ୟକଲେ ହୋଇ ସୁଖୀ । କୋଇଲି ଲୋ । ୯ ।

ପାଣ୍ଡବେ ବିପ୍ର ବେଶରେ । ପ୍ରବେଶିଲେ ଯାଇ ସଭା ଭିତରେ ।
ବସିଲେ ବିପ୍ର ସଙ୍ଗରେ । କୋଇଲି ଲୋ । ୧୦ ।

ତହୁଁ ଦ୍ରୁପଦ ରାଜନ । କହନ୍ତି ବଚନ ହେ ନୃପଗଣ ।
ଲକ୍ଷ ଭେଦନ୍ତୁ ବହନ । କୋଇଲି ଲୋ । ୧୧ ।

ଭବସନ୍ଧ କହେ ବାଣୀ । ସଭାକୁ ଆଣାଅ ରୂପ ଗୁଣୀ ।
ଦେଖନ୍ତୁ ସର୍ବ ନୃମଣି । କୋଇଲି ଲୋ । ୧୨ ।

ଦେଖି ଦ୍ରୌପଦୀର ମୁଖ । କାମାତୁର ହେଲେ ନୃପ ଯେତେକ ।
ରୂପ ଭାବ ଜନ୍ମେ ଦୁଃଖ । କୋଇଲି ଲୋ । ୧୩ ।

କହେ ମଗଧର ନାଥ । ସ୍ୱୟମ୍ବର ବିଧି କହ ନୃନାଥ ।
ଲକ୍ଷ ବିନ୍ଧିବୁ ତୁରିତ । କୋଇଲି ଲୋ । ୧୪ ।

ଧନୁଶର ଧରି କରେ । ଚଢ଼ିଯିବ ବେଗେ ପଟାଉପରେ ।
ଦୃଷ୍ଟି ଦେବ ଘଟଜଳରେ । କୋଇଲି ଲୋ । ୧୫ ।

ଊର୍ଦ୍ଧ୍ୱେ ଚେକି ଗଣ୍ଡେ ମୁଷ୍ଟି । ଯିବ ମୀନ ବାମ ନୟନ ଫାଟି ।
ପାଇବ ସେ କନ୍ୟାଗୋଟି । କୋଇଲି ଲୋ । ୧୬ ।

ଲକ୍ଷେ ନୃପ ସପ୍ତରଥୀ । କେହି ନ ପାରିଲେ ଲକ୍ଷକୁ ବିନ୍ଧି ।
ଦ୍ରୁପଦଙ୍କ ଏ ଭାରତି । କୋଇଲି ଲୋ । ୧୭ ।

ଚଣ୍ଡାଳ ଶୂଦ୍ର ବ୍ରାହ୍ମଣ । ଲକ୍ଷକୁ ବିନ୍ଧିବ ଯେବଣ ଜନ ।
ହେବ ସେହି ତା ରମଣ । କୋଇଲିଲୋ ।୧୮ ।
ଦରବାର ଜ୍ୟେଷ୍ଠ ଭାଇ । ପଚ୍ଚରୁ ଅଛନ୍ତି ହେ ଭାଇ ଗୋସାଇଁ ।
ବିନ୍ଧିବାକୁ ଅଛ କେହି । କୋଇଲି ଲୋ । ୧୯।
ଜନପୁରେ ଜନଜଣ । ସ୍ୱର୍ଗପୁରେ ଅଛି ଦେବ ସ୍ୱଜନ ।
ପାତାଳେ ବାସୁକୀ ଜାଣ । କୋଇଲିଲୋ । ୨୦।
ମର୍ତ୍ତ୍ୟପୁରେ ପାର୍ଥ । ଲକ୍ଷ ବିନ୍ଧିବାକୁ ଅଟେ ସାମର୍ଥ ।
ତାକୁ ସେ ହେବ ପ୍ରାପତ । କୋଇଲିଲୋ । ୨୧ ।
କାହିଁ ଅର୍ଜୁନ ପାଣ୍ଡବ । ଲକ୍ଷକୁ ବିନ୍ଧି ସେ ଦ୍ରୌପଦୀ ନେବ ।
ସତ୍ୟ କହ ତୁ କେଶବ । କୋଇଲିଲୋ । ୨୨ ।
ଦେଖନ୍ତୁ ବିପ୍ର ବେଶରେ । ବିପ୍ର ସଙ୍ଗେ ଛନ୍ତି ପଞ୍ଚ ସୋଦରେ ।
ସାମର୍ଥ ସେ ମର୍ତ୍ତ୍ୟପୁରେ । କୋଇଲିଲୋ । ୨୩ ।
ଯୁଧିଷ୍ଠିର ଆଜ୍ଞାଦେଇ । ଯାଅ ତୁ ଅର୍ଜୁନ ବିନ୍ଧିବା ପାଇଁ ।
ବଡ଼େ-ଅଣନ୍ତି ପେସାଇ । କୋଇଲି ଲୋ । ୨୪ ।
ଏହିପରି ଜନବେଳ । ପାର୍ଥଙ୍କୁ ପେସନ୍ତି ବିପ୍ରସକଳ ।
ଉକ୍ତି କଲେ ଯୁଧିଷ୍ଠିର । କୋଇଲିଲୋ । ୨୫ ।
ଶୁଣ ଶୁଣ ସଭାଦ୍ୱିଜ । ଲକ୍ଷ ବିନ୍ଧିବାକୁ ହୋଇଛି ସଜ ।
ନ ବିନ୍ଧିଲେ ତାରୁ ଲାଜ । କୋଇଲି ଲୋ । ୨୬ ।
ଲକ୍ଷଠାରେ ଉପଗତ । ଧନୁ କରେ ଧରି କୁନ୍ତିରସୁତ ।
ବିନ୍ଧିବା ପାଇଁ ଉଦ୍ୟତ । କୋଇଲି ଲୋ । ୨୭ ।
ପାର୍ଥଙ୍କୁ ଦେଖି ଦ୍ରୁପଦ । କେଶିନୀ ଶୁଣ ତୁ ମୋହର ଉକ୍ତି ।
ଏହାଙ୍କ ହେବ ଯୁବତୀ । କୋଇଲି ଲୋ । ୨୮ ।
କେଶିନୀ ବୋଲେ ବଚନ । ଭିକ୍ଷୁକ ପଣ୍ଡାକୁ ବଳେ କି ମନ ।
ଇଚ୍ଛ ତୁ ଅନ୍ୟ ସଜନ । କୋଇଲି ଲୋ । ୨୯ ।
ଅନ୍ୟେ ନାହିଁ ପ୍ରୟୋଜନ । ବ୍ରାହ୍ମଣ ହୋଇବେ ମୋର ରମଣ ।
ଫୁଟିଲେ ବାମ ନୟନ । କୋଇଲି ଲୋ । ୩୦ ।

ଏବେ ପ୍ରଭୁ ଜଗନ୍ନାଥ । ଲକ୍ଷକୁ ଭେଦନ୍ତୁ କୃଷ୍ଣଙ୍କ ସୁତ ।
ସ୍ମରନ୍ତୁ ସେ ମୋର କାର୍ଯ୍ୟ । କୋଇଲି ଲୋ । ୩୧ ।
ତାହାଙ୍କର ହେବ ନାଶ । ନରତେ ଶ୍ରୀବର ପଦ ଭୃମ୍ବର ।
ତାହାର ଘେନ ଗୁହାର । କୋଇଲି ଲୋ । ୩୨ ।
ଅର୍ଜୁନ ଭଞ୍ଜିଲେ ଲକ୍ଷ । ଶଙ୍ଖଧ୍ୱନି କଲେ ସଞ୍ଜୀବମୁଖ ।
ଦ୍ରୌପଦୀ ଗଲେ ତା ପାଶ । କୋଇଲି ଲୋ । ୩୩ ।
ମଜା ଦ୍ୟନ୍ତେ ପାର୍ଥଗଲେ । ନ ଦେଉ ବୋଲି ସେ:ବାରଣ କଲେ
ଅଛନ୍ତି ମୋ ସହୋଦରେ । କୋଇଲି ଲୋ । ୩୪ ।
ଷଡ଼ବଳ ଯାଅ ବେଗେ । ଦୁର୍ଯ୍ୟୋଧନ କହେ ଶକୁନି ଆଗେ ।
ଧନ ନଦେବ ଯାହା ମାଗେ । କୋଇଲି ଲୋ । ୩୫ ।
ଦକ୍ଷିଣା ବଳା ଅଦେଖେ । କହିଲେ ଯାଇ ସେ ବିପ୍ରଙ୍କ ପାଶେ ।
ଯାହା ମାଗ ତୋ ମାନସେ । କୋଇଲି ଲୋ । ୩୬ ।
ଚନ୍ଦ୍ରଂ ପଥ କଲେ ଉକ୍ତି । ଭ୍ରମମତୀ ନଦେଉ ମୋହର କଡ ।
ତା ପାଦେ ଖଣ୍ଡି ସେ ଜଡ । କୋଇଲି ଲୋ । ୩୭ ।
ଏସନ ବଚନ ଶୁଣି । ଦୁର୍ଯ୍ୟୋଧନ ଅଗେ କହେ ଶକୁନି ।
କ୍ରୋଧ ହେଲେ ନୃପମଣି । କୋଇଲି ଲୋ । ୩୮ ।
ଡାକେ ଅରେ ଦୁଃଶାସନ । ଲଜ୍ଜିତ ହେଲାଇ ଭିକ୍ଷୁ ବ୍ରାହ୍ମଣ ।
ଦ୍ରୁପଦ ଯୋଗ୍ୟ ଏସନ । କୋଇଲି ଲୋ । ୩୯ ।
ଦ୍ରୁପଦ ଝିଅକୁ ଘଲା । ଦୁଃଶାସନ ସଙ୍ଗେ ରୁପୋଢ଼େ ଦେଲା ।
କ୍ଷୀଣ ତେଜ ସେ ପଡ଼ିଲା । କୋଇଲି ଲୋ । ୪୦ ।
ଦୁଃଖର ଦେଖି ଅନ୍ୟାୟ । ଝରକୁ ଭଞ୍ଜନ୍ତେ କୁନ୍ତୀ ତନୟ ।
ଭୁତଳେ ପଡ଼େ ତା କାୟ । କୋଇଲି ଲୋ । ୪୧ ।
ଦୁର୍ଯ୍ୟୋଧନ ନୃପବର । ଅଙ୍କ୍ଷା ଦଅଇ ଏ ଷଡ଼ଙ୍କୁ ମାର ।
ମାଇଲା ଭାଇକୁ ମୋର । କୋଇଲି ଲୋ । ୪୨ ।
ସହସ୍ରେ ଶର କର । ଷଡ଼ଙ୍କ ମାଇବା ମନେ ବଳର ।
ପଳାଇଲେ ତାଙ୍କ ସେଣ । କୋଇଲି ଲୋ । ୪୩ ।

ଏକଳେ କହେ ଦ୍ରୁପଦୀ । ପ୍ରାଣନାଥ ଶୁଣ ମୋର ବଚନ ।
ନ ଥିବା ସମ୍ଭବ କଥା । କୋଇଲି ଲୋ । ୪୪ ।
ପାର୍ଥ ଭାଷନ୍ତି ଏ ଭାଷା । ହୃଦ ମଧ୍ୟେ ଭାବ ରୁ ଜଗଦୀଶ ।
ଏ ସର୍ବେ କରିବେ ନାଶ । କୋଇଲି ଲୋ । ୪୫ ।
ଅନାଥ ଜନର ନାଥ । ଅଟ ପ୍ରଭୁ ତୁମ୍ଭେ ଦେବକୀ ସୁତ ।
ସାହାକର ହେ ଅଚ୍ୟୁତ । କୋଇଲି ଲୋ । ୪୬ ।
କୁରୁ ଅଠାଣୋଇ ଭାଇ । ଯୁଦ୍ଧ କରିବାକୁ ସକଳେ ଯାଇଁ ।
ତା ଶରେ ପ୍ରାଣ ହରାଇ । କୋଇଲି ଲୋ । ୪୭ ।
ଦୁର୍ଯ୍ୟୋଧନ ରହି ଗୁପ୍ତେ । ମୃତ୍ୟୁରୁ ବଞ୍ଚିଲା ହୋଇ କଷ୍ଟିଲେ ।
ଭାରୁଅଛି ଅସି ପଥେ । କୋଇଲି ଲୋ । ୪୮ ।
ସର୍ବଭ୍ରାତ ମୋର ମଲେ । ତାହାଙ୍କ ସଙ୍ଗରେ ମୁଁ ମରିଥିଲେ ।
ଦୁଃଖ ନ ହୁଅନ୍ତା ଚଟେଲ । କୋଇଲି ଲୋ । ୪୯ ।
ଭୀମଙ୍କୁ ଯୁଧିଷ୍ଠି କହି । ପାର୍କୁ ଅଣ ରେ ମୋଠାକୁ ଯାଇ ।
ଜମିଲେ ସେ ଶୀଘ୍ର ହୋଇ । କୋଇଲି ଲୋ । ୫୦ ।
ଭୀମସେନ ବୀରବର । ଯୁଦ୍ଧେ ମାରଇ କେତେ ନୃପବର ।
ମଡ଼ା ପଡ଼ିଲା ଭୂମିର । କୋଇଲି ଲୋ । ୫୧ ।
ଏମନ୍ତେ ଅନ୍ତକୁ ଅର । ଯୁଧିଷ୍ଠି ଅଙ୍କାରେ ନକୁଳ ବୀର ।
ପୁଣି ଗଲେ ମଦ୍ରିବର । କୋଇଲି ଲୋ । ୫୨ ।
ଶୂରଭ୍ରାତ ଏକଠାରେ । ମିଳି ମାଇଲେ ସେ ଅନେକ ନରେ ।
କେହି ନୃପ ନ ବଞ୍ଚିଲେ । କୋଇଲି ଲୋ । ୫୩ ।
ଯୁଧିଷ୍ଠିର ଥିଲେ ଯହିଁ । ଦ୍ରୌପଦୀ ସଙ୍ଗତେ ସେ ଶୂରଭାଇ ।
ଉପଗତ ହେଲେ ତହିଁ । କୋଇଲି ଲୋ । ୫୪ ।
ତାହାଙ୍କର ଶ୍ରୀ ଚରଣେ । ପ୍ରଣାମ କରନ୍ତି ଜଣକୁ ଜଣେ ।
ଶୁଭ ବାଞ୍ଛନ୍ତି ଆପଣେ । କୋଇଲି ଲୋ । ୫୫ ।
ଯୁଧିଷ୍ଠି କହେ ବଚନ । ଅହୋଷେ ବଧିଲ ସୋଦର ଗଣ ।
ବଞ୍ଚାଇ ଦଅ ଅର୍ଜୁନ । କୋଇଲି ଲୋ । ୫୬ ।

ତାହାଙ୍କ ଆଦେଶ ପାଇ । ସମସ୍ତଙ୍କୁ ପାର୍ଥ ଦେଲେ ଜଣାଇ ।
ସଜାଇଲେ ଚେତା ହୋଇ । କୋଇଲି ଲୋ । ୫୭ ।

ସଞ୍ଜ ହେଲା ଏହୁକ୍ଷଣି । ମୋ ପୁତ୍ରମାନେ ନ ଆସିଲେ ପୁଣି ।
ଭାବନ୍ତି ଭୋଜ ନନ୍ଦିନୀ । କୋଇଲି ଲୋ । ୫୮ ।

ଦ୍ରୁଉପଦୀ ପଞ୍ଚଭ୍ରାତ । କୁସଳ ଶାଳରେ ହେଲେ ଅଗତ ।
ଭୀମ ଡାକେ ମାତ ମାତ । କୋଇଲି ଲୋ । ୫୯ ।

ଭୀମ ଡାକ ଶୁଣି କୁନ୍ତୀ । କପାଟ ଫିଟାଇ ଦେଲେ ଝଟତି ।
ଆସିଲେ ପୁତ୍ରଙ୍କ ଛତି । କୋଇଲି ଲୋ । ୬୦ ।

ସମସ୍ତେ ତାଙ୍କ ପୟରେ । ପ୍ରଣାମ କରନ୍ତି ଭକତିଭରେ ।
ସୁକଲ୍ୟାଣ ସେ ବାଞ୍ଛିଲେ । କୋଇଲି ଲୋ । ୬୧ ।

କୁନ୍ତୀ କହନ୍ତି ବଚନ । ପାଇଲ ଅପୂର୍ବ କି ଦ୍ରବ୍ୟମାନ ।
ପାଇଲୁଁ କହେ ଅର୍ଜୁନ । କୋଇଲି ଲୋ । ୬୨ ।

ହର୍ଷହୋଇ ସେ ମନରେ । ବାଣ୍ଟି ଖାଅ ତୁମ୍ଭେ ପାଞ୍ଚ ସୋଦରେ ।
କହିଲେ ତାଙ୍କ ଆଗରେ । କୋଇଲି ଲୋ । ୬୩ ।

ଭୀମ କହେ ଶୁଣ ମାତା । ସଭାରେ ହୋଇଲା ଯେମନ୍ତ କଥା ।
ତାହା ଶୁଣି ଯିବ ବ୍ୟଥା । କୋଇଲି ଲୋ । ୬୪ ।

ଅର୍ଜୁନ ଲକ୍ଷକୁ ଭେଦି । ସଭାରେ ଆଣନ୍ତେ ସଙ୍ଗେ ଦ୍ରୌପଦୀ ।
ଯୁଝିଲେ ସର୍ବ ନୃପତି । କୋଇଲି ଲୋ । ୬୫ ।

ସଭାରେ ଯେତେ ବୃତ୍ତାନ୍ତ । କୌରବେ ଯେମନ୍ତେ ହେଲେ ଲଜ୍ଜିତ
କହିଲେ ପବନ ସୁତ । କୋଇଲି ଲୋ । ୬୬ ।

ମୋର ସତ୍ୟ ନ ଲଙ୍ଘିବ । ଦ୍ରୌପଦୀକୁ ସର୍ବେ ଭାର୍ଯ୍ୟା ହୋଇବ
ଯୁଗେ ଯୁଗେ କଥା ଥିବ । କୋଇଲି ଲୋ । ୬୭ ।

ଏମନ୍ତେ ବସ୍ତ୍ର କର । ପାଞ୍ଚ ସହୋଦର ଜନନୀ ସ୍ତ୍ରିଶ୍ଚ ।
ଶୋଇଲେ ଭୂମିରେ ପାଇ । କୋଇଲି ଲୋ । ୬୮ ।

ଭାବଇ ପାଞ୍ଚାଳେଶ୍ୱର । ଦୁହିତା ମୋ ଗଲା କେଉଁ ନଗର ।
ନ ଶୁଣେ ଭାଷା ମଧୁର । କୋଇଲି ଲୋ । ୬୯ ।

ଶିଖଣ୍ଡି ଧୃଷ୍ଟଦ୍ୟୁମନ । କେଶିନୀ ସହିତେ ଖୋଜ ବହନ ।
ଅଣ ଦୂହିତା ରତନ । କୋଇଲି ଲୋ । ୭୦ ।
ଖୋଜନ୍ତେ ଲୋକ ଯାଇ ଯାଇ । ଶିଖଣ୍ଡି ଧୃଷ୍ଟଦ୍ୟୁମନ ନ ପାଇ ।
ରାଜାଙ୍କୁ ହେଲେ ଜଣାଇ । କୋଇଲି ଲୋ । ୭୧ ।
କେଶିନୀ ଯାଇ ଖୋଜିଲା । କୁମ୍ଭକାର ଶାଳେ ପ୍ରବେଶ ହେଲା ।
ସୁବାସ ନାଶାରେ ନେଲା । କୋଇଲି ଲୋ । ୭୨ ।
ଜାଣନ୍ତେ ଏହି ସ୍ଥାନରେ । ରାଜକନ୍ୟା ଥିବେ ଭାବେ ଅନ୍ତରେ ।
ଯାଇ ଦେଖେଁ ମୁଁ ନଗେଲେ । କୋଇଲି ଲୋ । ୭୩ ।
ମାତା ସ୍ତ୍ରୀଶ୍ରୀ ପାଞ୍ଚଭ୍ରାତ । କୁମ୍ଭକ ଶାଳରେ ଛନ୍ତି ଅଦ୍ଭୁତ ।
ଦେଖି ଫେରିଲା ତୁରିତ । କୋଇଲି ଲୋ । ୭୪ ।
ରାଜଭବନେ ପ୍ରବେଶ । ହେବାରୁ ଦେଖି ସେ ପାଞ୍ଚାଳ ଈଶ ।
କେଶିନୀ କହେ ସନ୍ଦେଶ । କୋଇଲି ଲୋ । ୭୫ ।
ରାଜା ରାଣୀଙ୍କ ଛାମୁର । କରଯୋଡ଼ି କହେ ସବୁ ଖବର ।
ରାଣୀ ଶୁଣି ତା କାତର । କୋଇଲି ଲୋ । ୭୬ ।
ହାୟ୍ ହାୟ୍ ରେ ଦଇବ । ରାଜକନ୍ୟା ହୋଇ ଯାଁଷେ ଯୋଇବ ।
କେମନ୍ତେ କଷ୍ଟ ସହିବ । କୋଇଲି ଲୋ । ୭୭ ।
ଗଜଦନ୍ତ ପଲ୍ୟଙ୍କରେ । ଅଦ୍ଭୁତା ନୂହଇ ରଜନୀ କାଳେ ।
ଖଲ୍ଲି ଲହ ତା କପାଳେ । କୋଇଲି ଲୋ । ୭୮ ।
ରାଜା ବୁଝାଇ କହନ୍ତି । ଦେବ ଅର୍ଦ୍ଧେ ତାଙ୍କୁ ରାଜ ସମ୍ପତ୍ତି ।
ନ କର ତୁ ଉଦ୍ବେଗ । କୋଇଲି ଲୋ । ୭୯ ।
ଦ୍ୱାରକାରୁ ଶ୍ରୀବତ୍ସାଙ୍କି । ପାଣ୍ଡବମାନଙ୍କ ବିବାହ ପାଇଁ ।
ଆସିଥିଲେ ବେଶ ହୋଇ । କୋଇଲି ଲୋ । ୮୦ ।
ଯହିଁ ବିଜେ ଚକ୍ରଧର । କୁମ୍ଭକାର ଶାଳ ଅଗ୍ରେ ସୁନ୍ଦର ।
ହେବ କଥା ପଟାନ୍ତର । କୋଇଲି ଲୋ । ୮୧ ।
କୁନ୍ତୀ ଯୁଧିଷ୍ଠି ଦେବଙ୍କୁ । ଦେଖିଣ ଶ୍ରୀକୃଷ୍ଣ ନମିଲେ ତାଙ୍କୁ ।
ଭକ୍ତିରେ ତାଙ୍କ ଶ୍ରୀଅଙ୍କୁ । କୋଇଲି ଲୋ । ୮୨ ।

ଭୀମ ଅର୍ଜୁନ ନକୁଳ । ସର୍ବେ ନମିଲେକ ତାଙ୍କ ପଦ୍ମର ।
ଶୁଭ ବାଞ୍ଛିଲେ ତାଙ୍କର । କୋଇଲି ଲୋ । ୮୩ ।
ସ୍ୱର୍ଗପୁରୁ ଶଚୀଈଶ । ଦେବଙ୍କ ସଙ୍ଗତେ ହେଲେ ପ୍ରବେଶ ।
ଶୁଭେ କଲଶଙ୍କ ଘୋଷ । କୋଇଲି ଲୋ ।୮୪।
ଲୁବକଣାକେ ଦ୍ରୁପଦ । ଯାଇ ଦେଖିଲେ ସେ ଜଗତ ନାଥ ।
ପାଦେ କଲେ ପ୍ରଣମିତ । କୋଇଲି ଲୋ । ୮୫ ।
ଶୁଣ ପାଞ୍ଚାଳାଧିକାରୀ । ଭକ୍ଷ୍ୟଦ୍ରବ୍ୟ ଅଣ ସଂଗ୍ରହ କରି ।
ଏଷଣି ଭକ୍ଷ୍ୟ ଯେପରି । କୋଇଲି ଲୋ । ୮୬ ।
ଶୀଘ୍ର ଗମିଲେ ସ୍ୱଜନ । ବିଭାରେ ଲାଗଇ ଯେ ଦ୍ରବ୍ୟମାନ ।
ଆଣିଲେ ତାହା ବହନ । କୋଇଲି ଲୋ ।୮୭।
ବିବାହ କଲେ ତୁରିତ । ଦ୍ରୁପଦ ଯୌତୁକ ଦେଲେ ବହୁତ ।
ଦେଖି ସର୍ବେ ଆନନ୍ଦିତ । କୋଇଲି ଲୋ । ୮୮ ।
ପାଞ୍ଚାଳରୁ ଶ୍ରୀନିବାସ । ହସ୍ତିନାକୁ କଲେ ବିଦୁର ପାଶ ।
କହିଲେ ତାଙ୍କୁ ସନ୍ଦେଶ । କୋଇଲିଲୋ । ୮୯ ।
ହରଷଲେ ଦ୍ୱାରକାକୁ । ବିଦୁର କହିଲେ ଯାଇ ଅନ୍ଧଙ୍କୁ ।
ପାର୍ଥ ବିନ୍ଧିଲ ଲକ୍ଷକୁ । କୋଇଲି ଲୋ । ୯୦ ।
ଶୁଣି ସବୁ ବିବରଣ । ଧୃତରାଷ୍ଟ୍ର ହେଲେ ଆନନ୍ଦ ମନ ।
ଧନ କଲେ ବିତରଣ । କୋଇଲି ଲୋ । ୯୧ ।
ତାହାଙ୍କୁ ଆଣିବା ପାଇଁ । ଶତପୁତ୍ର ସଙ୍ଗେ ପାଞ୍ଚାଳ ଯାଇ ।
ସମୂଖଙ୍କୁ ସେ ବୁଝାଇ । କୋଇଲି ଲୋ ।୯୨ ।
ପାଣ୍ଡବଙ୍କୁ ସଙ୍ଗେ ଆଣି । ଇନ୍ଦ୍ରପ୍ରସ୍ଥ ଦେଲେ ଅନ୍ଧ ନୃମଣି ।
ରାଜ୍ୟକରିବାକୁ ପୁଣି । କୋଇଲି ଲୋ । ୯୩ ।
ଯେ ଯୁଗରେ ଯେଉଁପରି । ପାଞ୍ଚଭ୍ରାତାଙ୍କର ଏକଇ ସ୍ତ୍ରୀ ।
ହୋଇ ପତିବ୍ରତା ପାଞ୍ଚାଳୀ । କୋଇଲି ଲୋ ।୯୪।
ପଞ୍ଚାନନେ ପଦେ ଗୀତ । ଦ୍ରୌପଦୀ ସ୍ୱୟମ୍ବର ସମାପ୍ତ ।
ଗୋପାଳ ଚନ୍ଦ୍ରଙ୍କ କୃତ । କୋଇଲି ଲୋ । ୯୫ ।

ସମ୍ପୂର୍ଣ୍ଣ ।

କଟକ-ଅରୁଣୋଦୟ ପ୍ରେସରେ ଶ୍ରୀ ଚୈତନ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ

# ବିଜ୍ଞାପନା

ନିମ୍ନଲିଖିତ ପୁସ୍ତକମାନ କଟକ ଅରୁଣୋଦୟ ପ୍ରେସରେ
ତଲ୍ଲବ କଲେ ପାଇ ପାରିବେ ।

| | | |
|---|---|---|
| ଶ୍ରୀଗୀତା | | ଟ ୦ ।୵ |
| ସୁଧାରସାମୃତଗୀତା | ... | ଟ ୦ ।୵ |
| ଗୋପେଶ୍ୱରଗୀତା | ... | ଟ ୦ ୵୩ |
| ମତ୍ସ୍ୟପୁରାଣ | ... | ଟ ୦ ।୵ |
| କୂର୍ମପୁରାଣ ୧ ମ ୨ ୟ ଖଣ୍ଡ ଏକତ୍ରେ | | ଟ ୧ ୧ |
| ବରାହ ପୁରାଣ | ... | ଟ ୦ ଏ |
| ଏକାଦଶୀ ମାହାତ୍ମ୍ୟ | ... | ଟ ୦ ଏ |
| ଜଗନ୍ନାଥାମୃତଗୀତା | | ଟ ୦ ଏ |
| ଚୈତନ୍ୟ ସଂହିତା | | ଟ ୦ ଏ |
| ବଉଳାବତୀ ଶୋକ | | ଟ ୦ ୵ |
| ଭକ୍ତିଯୋଗବୋଧ ୩୪ ଶା | | ଟ ୦ ୵ |
| ଯାଜ୍ଞବଲ୍କ୍ୟ | | ଟ ୧ ୧ |
| ଶ୍ରୀମତେ ବର୍ଣ୍ଣନା | ... | ଟ ୦ ୧୯ |
| ଦୋଳଗୀତ | ... | ଟ ୦ ୵ ୩ |
| ମାଲ୍ୟବନ୍ତ ବଧ ଲୁଚକଣ୍ଟ | ... | ଟ ୦ ୵ ୨ |
| ଗରୁଡ଼ ଗୀତା | ... | ଟ ୦ ୵ |
| ଜଗନ୍ନାଥ ବଧ ଗୁପ୍ତବନ୍ଧ | ... | ଟ ୦ ୵ ୭ |
| ମହାସ୍ୱଗଣବଧ ,, | ... | ଟ ୦ ୵ |
| ଗୀତାମାହାତ୍ମ୍ୟ | | ଟ ୦ ୵ ୨ |
| ଶ୍ରୀକୃଷ୍ଣଲୀଳା (ଗୀତାଭିନୟ) | ... | ଟ ୦ ୵ |
| ଶ୍ରୀଅଧ୍ୟାତ୍ମ ନିଳକ ଚନ୍ଦ୍ରଶ୍ରୀ | ... | ଟ ୦ ୵ |

ଅରୁଣୋଦୟ ପ୍ରେସ
କଟକ ।



ଶ୍ରୀ ଅଚ୍ୟୁତଚନ୍ଦ୍ର ଦାସ
ପ୍ରୋପ୍ରାଇଟର